| | |
|---|---|
| ବହିର ନାମ | ଜଣା ଅଜଣା |
| ଲେଖକ / ଲେଖିକା | ପ୍ରଫେସର (ଡାକ୍ତର) ଶଶିମଣୀ ପଣ୍ଡା<br>ଡଃ ଫକୀର ମୋହନ ସାହୁ<br>କୁମାରୀ ପ୍ରମିଳା ହୋତା |
| ପ୍ରକାଶକ ଓ ସ୍ୱତ୍ୱାଧିକାରୀ | ଡଃ ବିମଳେନ୍ଦୁ ମହାନ୍ତି<br>ନିର୍ଦ୍ଦେଶକ, ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର<br>ଓଡ଼ିଶା, ଭୁବନେଶ୍ୱର |
| ପ୍ରକାଶନ ସଂଖ୍ୟା | ଜନସଂଖ୍ୟା ଶିକ୍ଷା ବିଭାଗ /<br>ଏସ୍.ଆର୍. ସି /୧/୯୮ |
| ଛାପା ସଂଖ୍ୟା | ୨,୦୦୦ |
| ପ୍ରଚ୍ଛଦ | ବ୍ରଜ କିଶୋର ଜେନା |
| ମୁଦ୍ରଣ | ଇମ୍ପ୍ରେସ୍, ଶ୍ରୀ ବିହାର କଲୋନି, କଟକ-୮ |
| Title of the book | JANA AJANA |
| Written by | Prof. (Dr) Sasimani Panda<br>Dr. Fakir Mohan Sahu<br>Ms. Pramila Hota |
| Publisher / Copyright | Dr. Bimalendu Mohanty<br>Director, SRC<br>Orissa, Bhubaneswar |
| Publication No | PE / SRC /1/ 98 |
| No. of Copies | 2,000 |
| Cover layout | B.K. Jena |
| Printed at | IMPRESS, Srivihar Colony<br>Cuttack-8 |

*Published under UNFPA/ Govt. of India PE Project*

ମଣିଷ ଦେହ ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗକୁ ନେଇ ଗଠିତ । ପ୍ରତ୍ୟେକଙ୍କର କାମ ଅନୁସାରେ ସେମାନଙ୍କର ନାମ ଦିଆଯାଇଥାଏ । ଯେଉଁ ଅଙ୍ଗଗୁଡ଼ିକ ପ୍ରଜନନ ପ୍ରକ୍ରିୟା (ଶିଶୁ ଜନ୍ମ କରିବା ପ୍ରକ୍ରିୟା)ରେ ଭାଗ ନିଅନ୍ତି, ସେମାନଙ୍କୁ ପ୍ରଜନନ ଅଙ୍ଗ ବା ଜନନେନ୍ଦ୍ରିୟ କୁହାଯାଏ । କେତେକ ମଧ୍ୟ ଏହାକୁ ଯୌନ ଅଙ୍ଗ ବୋଲି କହନ୍ତି । ଆମର ସାମାଜିକ ଚଳଣି ଅନୁସାରେ ଯୌନ ଅଙ୍ଗ କିମ୍ୱା ପ୍ରଜନନ ପ୍ରକ୍ରିୟା ବିଷୟରେ ଖୋଲାଖୋଲି ଆଲୋଚନାକୁ ରୁଚିହୀନତା ବା ଅଶ୍ଳୀଳତା ବୋଲି କୁହାଯାଏ । ଯାହାଫଳରେ ଅଧିକାଂଶ ଯୁବକ ଯୁବତୀ ଏପରିକି କେତେକ ବୟସ୍କ ବିବାହିତ ପୁରୁଷ ଓ ସ୍ତ୍ରୀ ପ୍ରଜନନ ପ୍ରକ୍ରିୟା ସମ୍ପର୍କରେ ଭଲଭାବରେ ଜାଣନ୍ତି ନାହିଁ । ସମାଜରେ ସୁସ୍ଥ ତଥା ଦାୟିତ୍ୱ ସମ୍ପନ୍ନ ଯୌନ ଆଚରଣର ପ୍ରସାର ପାଇଁ ଏହି ଜ୍ଞାନର ଆବଶ୍ୟକତା ବହୁତ ବେଶି । ତେଣୁ ପ୍ରତ୍ୟେକ ବ୍ୟକ୍ତି ଯୌନାଙ୍ଗର ଗଠନ ଓ କାର୍ଯ୍ୟକାରିତା ସଂପର୍କରେ ମୌଳିକ ଜ୍ଞାନ (ବା ମୂଳକଥା) ଆହରଣ କରିବା ଆବଶ୍ୟକ ।

ପ୍ରଜନନର ମୂଳଲକ୍ଷ୍ୟ ହେଉଛି ବଂଶରକ୍ଷା ପାଇଁ ସନ୍ତାନର ଜନ୍ମ । ପୁରୁଷ ଓ ନାରୀର ଯୌନ କୋଷର ମିଳନରେ ଏହି ପ୍ରକ୍ରିୟା ଆରମ୍ଭ ହୁଏ । ଏହାପରେ ମିଳିତ କୋଷଟି ଗର୍ଭପିଣ୍ଡ (ଭ୍ରୂଣ)ରେ ପରିଣତ ହୁଏ । ଗର୍ଭପିଣ୍ଡ (ଭ୍ରୂଣ) ପୂର୍ଣ୍ଣାଙ୍ଗ ଶିଶୁରେ ପରିଣତ ହୁଏ । ଏହି ପ୍ରକ୍ରିୟାରେ ପୁରୁଷ ଯୌନ କ୍ରିୟା ସମୟରେ ନିଜର ଯୌନ କୋଷ (ଶୁକ୍ରାଣୁ /ଶୁକ୍ରକୀଟ) ଗୁଡ଼ିକୁ ନାରୀର ପ୍ରଜନନ ଅଙ୍ଗରେ ନିକ୍ଷେପ କରେ । ଏହା ପରଠାରୁ ଶିଶୁର ଜନ୍ମ ପର୍ଯ୍ୟନ୍ତ ପ୍ରତ୍ୟକ୍ଷ ଭାବରେ ତାକୁ ଆଉ କିଛି କରିବାକୁ ପଡ଼େ ନାହିଁ । ଗର୍ଭପିଣ୍ଡ (ଭ୍ରୂଣ) ଗଠିତ ହେବାଠାରୁ ଶିଶୁ ଜନ୍ମ ପର୍ଯ୍ୟନ୍ତ ସମସ୍ତ ଦାୟିତ୍ୱ ମାଆକୁ ନେବାକୁ ପଡ଼ିଥାଏ । ତେଣୁ ନାରୀର ଜନନେନ୍ଦ୍ରିୟର ଗଠନ ପୁରୁଷମାନଙ୍କଠାରୁ ସଂପୂର୍ଣ୍ଣ ଅଲଗା । ଏଥିପାଇଁ ସେମାନଙ୍କୁ ବିଭିନ୍ନ ପ୍ରଜନନଗତ ସ୍ୱାସ୍ଥ୍ୟ ସମସ୍ୟାର ସମ୍ମୁଖୀନ ହେବାକୁ ବା ଭୋଗିବାକୁ ପଡ଼ିଥାଏ ।

ନାରୀର ଯୌନ-ଅଙ୍ଗଗୁଡ଼ିକ ମଧ୍ୟରେ ଡିମ୍ବାଶୟ, ଡିମ୍ବବାହୀ ନଳୀ, ଗର୍ଭାଶୟ, ଯୋନି ନାଳୀ ଏବଂ ଯୋନି କପାଟ ଅନ୍ତର୍ଭୁକ୍ତ । କେବଳ ଯୋନି କପାଟକୁ ଛାଡ଼ି ଦେଲେ ସବୁ ଜନନେନ୍ଦ୍ରିୟଗୁଡ଼ିକ ତଳି ପେଟର ବସ୍ତି କୋଟରୀ ଭିତରେ ଅବସ୍ଥିତ । ତେଣୁ ସେଗୁଡ଼ିକୁ ବାହାରୁ ଦେଖିହୁଏ ନାହିଁ । ଶିଶୁ କନ୍ୟାଟି ତା' ମାଆ ପେଟରେ ଥିବାବେଳେ ତାର ଯୌନ ଅଙ୍ଗଗୁଡ଼ିକର ଗଠନ ହୋଇଥାଏ ।

ପରିପକ୍ୱ ଯୌନ କୋଷ ଗର୍ଭ ସଂଚାର ପାଇଁ ଅପରିହାର୍ଯ୍ୟ । ନାରୀର ଯୌନ କୋଷ ଯୌନ ଗ୍ରନ୍ଥି ଦ୍ୱାରା ପ୍ରସ୍ତୁତ ହୁଏ । ନାରୀମାନଙ୍କର ଯୌନ ଗ୍ରନ୍ଥିକୁ ଡିମ୍ବାଶୟ କହନ୍ତି । ପ୍ରତ୍ୟେକ ନାରୀର ଦୁଇଟି ଡିମ୍ବାଶୟ ଥାଏ । ଏହା ଗର୍ଭାଶୟର ଦୁଇପାଖରେ




ଚିତ୍ର -୧

ଥାଏ । ଏହି ଡିମ୍ବାଶୟ ଦୁଇଟି ଅନ୍ୟ ଜନନେନ୍ଦ୍ରିୟଗୁଡ଼ିକ ପରି ମା' ପେଟରୁ ଅର୍ଥାତ୍ ଶିଶୁ ଜନ୍ମ ହେବା ପୂର୍ବରୁ ଗଠନ ହୋଇଥିଲେ ମଧ ଏହା ବାଲ୍ୟାବସ୍ଥା ଶେଷ ପର୍ଯ୍ୟନ୍ତ କାର୍ଯ୍ୟକାରିଣୀ ଶକ୍ତି ଲାଭ କରି ନଥାଏ । କିଶୋର ଅବସ୍ଥାର ପ୍ରଥମରେ ଏହାର ବିକାଶ ଓ ବୃଦ୍ଧି ହୋଇଥାଏ । ତା' ପରଠାରୁ ପ୍ରତି ମାସରେ ଡିମ୍ବାଶୟରେ ଗୋଟିଏ ଲେଖାଏଁ ଡିମ୍ବାଣୁ ତିଆରି ହୁଏ । ସାଧାରଣତଃ ଦୁଇଟି ଡିମ୍ବାଶୟରୁ ଅଦଳବଦଳ ଭିତ୍ତିରେ ଗୋଟିକରେ ଏହା ସଂଗଠିତ ହୁଏ । ଡିମ୍ବାଣୁଟିର ବିକାଶ ଓ ବୃଦ୍ଧି ଘଟିବା ସମୟରେ ଡିମ୍ବାଶୟରେ ଥିବା ଜୀବକୋଷ ଦୁଇଟି ଗୁରୁତ୍ୱପୂର୍ଣ୍ଣ ଜୀବରସ ତିଆରି କରନ୍ତି । ତାହାକୁ ଇଷ୍ଟ୍ରୋଜେନ ଓ ପ୍ରୋଜେଷ୍ଟେରନ୍ କହନ୍ତି । ଏହି ଜୀବରସ ଦୁଇଟି ଯୋଗୁଁ କିଶୋରୀର ଶରୀରରେ ନାରୀ ସୁଲଭ ଗୁଣଗୁଡ଼ିକର ପରିପ୍ରକାଶ ହୁଏ (ଦେଖାଦେଇଥାଏ) । ଡିମ୍ବାଶୟରୁ ପରିପକ୍ୱ ଡିମ୍ବାଣୁର କ୍ଷରଣ ଘଟେ । ଗର୍ଭାଶୟ ଝିଲ୍ଲିର ବିକାଶ ହୁଏ ଏବଂ ଯୋନି ନାଳ ଓଦା ରଖୁଥିବା ତରଳ ପଦାର୍ଥ ସୃଷ୍ଟି ହୁଏ । ଏହି ଜୀବରସ ଦୁଇଟି ନିୟମିତ ଋତୁଚକ୍ର ପାଇଁ ଦାୟୀ । ଡିମ୍ବାଣୁର କାର୍ଯ୍ୟକାରିଣୀ ଶକ୍ତି ଝିଅଟିର ୧୨-୧୩ ବର୍ଷରୁ ଆରମ୍ଭ ହୋଇ ୪୫ ବର୍ଷ ବୟସ ପର୍ଯ୍ୟନ୍ତ ଲାଗିରହେ । ସେଥିପାଇଁ ନାରୀର ଏହି ବୟସ ପ୍ରଜନନ ବୟସ ଭାବରେ ପରିଗଣିତ ହୁଏ । ୪୫ ବର୍ଷ ବେଳକୁ ଡିମ୍ବାଶୟରେ ଡିମ୍ବାଣୁର ପ୍ରସ୍ତୁତି ଓ କ୍ଷରଣ କମିଆସେ । ଏହା ସହିତ ଯୌନ ଉଦ୍ଦୀପକ ଜୀବରସର ପରିମାଣ ମଧ୍ୟ କମିଯାଏ । ପୂର୍ବପରି ଋତୁଚକ୍ର ନିୟମିତ ଭାବରେ ହୁଏ ନାହିଁ । ତହିଁରେ ବ୍ୟତିକ୍ରମ ଦେଖାଯାଏ । କିଛି ଦିନ ପରେ ଋତୁସ୍ରାବ ସବୁଦିନ ପାଇଁ ବନ୍ଦ ହୋଇଯାଏ । ଏହି ଅବସ୍ଥାକୁ ରଜନିବୃତ୍ତି ବୋଲି କୁହାଯାଏ ।

ପ୍ରତ୍ୟେକ ନାରୀର ଗୋଟିଏ ଗର୍ଭାଶୟ ଥାଏ । ଏହା ବସ୍ତି କୋଟରୀ ଭିତରେ ଅବସ୍ଥିତ । ଗଠନ ଦୃଷ୍ଟିରୁ ଗର୍ଭାଶୟକୁ ଦୁଇ ଭାଗରେ ବିଭକ୍ତ କରାଯାଇଅଛି । ଯଥା-




ଚିତ୍ର -୨

ଉପର ଚଉଡ଼ା ଅଂଶ ଓ ଅଣ ଓସାରିଆ ନିମ୍ନ (ତଳ) ଅଂଶ । ଏହି ଅଣ ଓସାରିଆ ଅଂଶକୁ ଗର୍ଭାଶ୍ରୟ ଗ୍ରୀବା କହନ୍ତି ।

ଗର୍ଭାଶୟର ଚଉଡ଼ା ଅଂଶଟି ମୁଖ୍ୟତଃ ମାଂସପେଶୀ ଦ୍ୱାରା ତିଆରି । ଏହି ମାଂସପେଶୀ ଶରୀରର ଅନ୍ୟ ମାଂସପେଶୀଠାରୁ ଭିନ୍ନ । ଏହାର କେତେକ ବିଶେଷ ଗୁଣ ଅଛି, ଯାହାଦ୍ୱାରା କି ଏହା ଗର୍ଭାଶୟରେ ବଢୁଥିବା ଶିଶୁକୁ ଭଲଭାବରେ ତା'ର ରହିବାର ସ୍ଥାନ ଯୋଗାଇ ଦେଇଥାଏ । କେବଳ ସେତିକି ନୁହେଁ, ଏହା ମଧ୍ୟ ଗର୍ଭସ୍ଥ ପିଲା (ଭ୍ରୁଣ)ର ବୃଦ୍ଧି ଓ ବିକାଶରେ ସାହାଯ୍ୟ କରିଥାଏ । ଏହି ମାଂସପେଶୀର ସଂକୋଚନ ପ୍ରକ୍ରିୟାର ବିଶେଷତ୍ୱ ଯୋଗୁଁ ଶିଶୁର ଜନ୍ମ ସମ୍ଭବ ହୁଏ । ଫୁଲ ଠିକ୍ ସମୟରେ ପଡ଼ିଥାଏ ଏବଂ ଫୁଲ ପଡ଼ିବା ପରେ ରକ୍ତ କ୍ଷୟର ପରିମାଣ ଆପେ ଆପେ କମି ଯାଇଥାଏ । ନଚେତ୍ ପ୍ରସବ ସମୟରେ ଏବଂ ତା'ପରେ ମାଆର ଶରୀରରୁ ରକ୍ତ କ୍ଷୟର ପରିମାଣ ନିୟନ୍ତ୍ରଣ କରିବା ଅସମ୍ଭବ ହୁଅନ୍ତା । ଗର୍ଭାବସ୍ଥାରେ ଗର୍ଭାଶୟର ଗ୍ରୀବା ପୂରାପୂରି ବନ୍ଦ ଥାଏ । ଏହା ପିଲାକୁ ନିଜ ସ୍ଥାନରେ ରହିବାକୁ ସାହାଯ୍ୟ କରେ । ଏହି ସମୟରେ ଗର୍ଭାଶୟ ଗ୍ରୀବା ଖୋଲା ରହିଲେ ଗର୍ଭପାତ ହେବାର ସମ୍ଭାବନା ବହୁତ ବେଶି । ପ୍ରସବ ପ୍ରକ୍ରିୟା ଆରମ୍ଭ ହେବା ପରେ ଗର୍ଭାଶୟ ଗ୍ରୀବା ଭିତର ବାଟ ଧୀରେ ଧୀରେ ଖୋଲିଯାଏ । ଆଂଶିକ ଖୋଲା ହୋଇଥିବା ବାଟରେ ପିଲାର ମୁଣ୍ଡକୁ ଟଣାଟଣି କରିବାକୁ ଚେଷ୍ଟା କଲେ ଗର୍ଭାଶୟ ଗ୍ରୀବା କ୍ଷତବିକ୍ଷତ ହୋଇଥାଏ । ସଙ୍ଗେ ସଙ୍ଗେ ଏହାର ଚିକିତ୍ସା ନ କଲେ ପରେ ତାହା ନାନା ପ୍ରକାର ଅସୁବିଧା ସୃଷ୍ଟି କରେ । ତନ୍ମଧ୍ୟରୁ ବାରମ୍ବାର ଗର୍ଭପାତ ଓ ଶ୍ୱେତସ୍ରାବ ଗୁରୁତ୍ୱପୂର୍ଣ୍ଣ । ବେଳେବେଳେ ଗର୍ଭାଶୟ ଗ୍ରୀବାର ପ୍ରଦାହ ବନ୍ଧ୍ୟାତ୍ୱର କାରଣ ହୋଇଥାଏ । ନାରୀମାନଙ୍କ ଠାରେ ଦେଖାଦେଇଥିବା କର୍କଟ ରୋଗଗୁଡ଼ିକ ମଧ୍ୟରେ ଗର୍ଭାଶୟ ଗ୍ରୀବା କର୍କଟ ରୋଗ ପ୍ରଧାନ ଅଟେ । କିନ୍ତୁ ଏହି ରୋଗକୁ ପ୍ରାଥମିକ

ଅବସ୍ଥାରେ ଚିହ୍ନଟ କରି ଚିକିତ୍ସା କଲେ ରୋଗ ସମ୍ପୂର୍ଣ୍ଣ ଭାବରେ ଭଲ ହୋଇଥାଏ ।

ଗର୍ଭାଶୟର ଉଭୟ ପାର୍ଶ୍ୱରେ ଗୋଟିଏ ଲେଖାଏଁ ଡିମ୍ବବାହୀ ନଳୀ ଥାଏ । ଏହି ନଳୀର ଗୋଟିଏ ପାଖ ଗର୍ଭାଶୟ ସହିତ ଲାଗିଥାଏ । ଅନ୍ୟ ପାଖଟି ମୁକ୍ତ ଭାବରେ ଡିମ୍ବାଶୟ ଉପରେ ଝୁଲୁଥାଏ । ଏହି ଅଂଶଟି ଡିମ୍ବବାହୀ ନଳୀର ଅନ୍ୟ ଅଂଶ ତୁଳନାରେ ବହୁତ ଓସାରିଆ ଏବଂ ଏହା ଦେଖିବାକୁ ଏକ କାହାଳି ପରି । ଡିମ୍ବାଶୟରୁ ଡିମ୍ବାଣୁ ବାହାରିବା ବେଳେ ତାକୁ ଧରିବା ଏହି ଅଂଶର କାର୍ଯ୍ୟ । ଏହି ପ୍ରକ୍ରିୟା ଦ୍ୱାରା ଡିମ୍ବାଣୁ ସହଜରେ ଡିମ୍ବବାହୀ ନଳୀ ଭିତରେ ପ୍ରବେଶ କରି ସେଠାରେ ରହେ । ଗର୍ଭୋଦୟ ପାଇଁ ଡିମ୍ବବାହୀ ନଳୀ ଭିତରେ ଥିବା ସୂକ୍ଷ୍ମବାଟର ଅବିଚ୍ଛିନ୍ନତା




ଚିତ୍ର - ୩

ଏକାନ୍ତ ଆବଶ୍ୟକ । କାରଣ ଏହି ବାଟ ଦେଇ ଶୁକ୍ରକୀଟଗୁଡ଼ିକ ଡିମ୍ବାଣୁ ପାଖରେ ପହଞ୍ଚି ଥାଆନ୍ତି । ଏହି ବାଟ ବନ୍ଦ ହୋଇଗଲେ ଦୁଇ ଯୌନ କୋଷର ମିଳନରେ ବାଧା ସୃଷ୍ଟି ହୁଏ । ଜୀବାଣୁ ସଂକ୍ରମଣ ଡିମ୍ବବାହୀ ନଳୀରେ ଥିବା ସୂକ୍ଷ୍ମବାଟ ବନ୍ଦ କରିବାର ଏକ ମୁଖ୍ୟ କାରଣ । ଯୌନ ରୋଗ ଭୋଗୁଥିବା ନାରୀମାନଙ୍କର ଡିମ୍ବବାହୀ ନଳୀ ବନ୍ଦ ହେବା ଏକ ସାଧାରଣ ଘଟଣା । ଗର୍ଭପାତ ବା ପ୍ରସବ ସମୟରେ କିମ୍ବା ପ୍ରସବର ପରବର୍ତ୍ତୀ ଅବସ୍ଥାରେ ଜୀବାଣୁ ସଂକ୍ରମଣ ପ୍ରତିରୋଧ ପାଇଁ ଉପଯୁକ୍ତ ବ୍ୟବସ୍ଥା ଗ୍ରହଣ ନ କଲେ ଡିମ୍ବବାହୀ ନଳୀର କ୍ଷତି ହୋଇଥାଏ । ଏପରିକି ମାସିକ ରକ୍ତସ୍ରାବ ସମୟରେ ଭଲଭାବରେ ସଫାସୁତୁରା ରହିବା ଅଭାବରୁ ଯୌନାଙ୍ଗରେ ପ୍ରଦାହ ଘଟି ତାହା ଡିମ୍ବବାହୀ ନଳୀକୁ ବ୍ୟାପି ଯାଇଥାଏ ।

ଡିମ୍ବବାହୀ ନଳୀ ବନ୍ଦ ହୋଇଥିବା ନାରୀମାନେ ପ୍ରଜନନଗତ ଦୁଇଟି ସମସ୍ୟାର ସମ୍ମୁଖୀନ ହୋଇଥାଆନ୍ତି । ସେଥିମଧ୍ୟରୁ ଗୋଟିଏ ହେଲା ବନ୍ଧ୍ୟାତ୍ୱ ଏବଂ ଅନ୍ୟଟି ସଂସ୍ଥାନଭ୍ରଷ୍ଟ ଗର୍ଭ ଧାରଣ । ଡିମ୍ବବାହୀ ନଳୀରେ ଥିବା ବାଟ ପୂରା ମାତ୍ରାରେ ବନ୍ଦ ହୋଇଗଲେ ତାହା ବନ୍ଧ୍ୟାତ୍ୱର କାରଣ ହୋଇଥାଏ । କାରଣ ଏପରି ପରିସ୍ଥିତିରେ ଶୁକ୍ରକୀଟ ଡିମ୍ବାଣୁ ପାଖରେ ପହଞ୍ଚି ପାରନ୍ତି ନାହିଁ । ତେଣୁ ଦୁଇ ଯୌନ କୋଷର ମିଳନ ସମ୍ଭବ ହୁଏ ନାହିଁ । କେତେକ କ୍ଷେତ୍ରରେ ପ୍ରସବ ରାସ୍ତାର ସଂକ୍ରମଣ ଡିମ୍ବବାହୀ ନଳୀ ବାଟକୁ ପୂରା ବନ୍ଦ ନ କରି ଆଂଶିକ ଭାବରେ ବନ୍ଦ କରିଦିଏ । ଏପରି ଘଟିଲେ ଶୁକ୍ରକୀଟ ଆଂଶିକ ଖୋଲାଥିବା ବାଟରେ ପ୍ରବେଶ କରି ଡିମ୍ବାଣୁ ପାଖରେ ପହଞ୍ଚି ପାରେ । ତେଣୁ ଡିମ୍ବାଣୁ ଓ ଶୁକ୍ରାଣୁର ମିଳନ ହୋଇ ଗର୍ଭୋଦୟର ଭିତ୍ତିଭୂମି ପ୍ରସ୍ତୁତ ହୁଏ । ମାତ୍ର ଏହି ବୀଜ କୋଷଟି ଡିମ୍ବବାହୀ ନଳୀ ମଧ୍ୟ ଦେଇ ଗର୍ଭାଶୟରେ ପହଞ୍ଚି ପାରେ ନାହିଁ । ଫଳରେ ଗର୍ଭପିଣ୍ଡ ଗର୍ଭନଳୀରେ ରହିଯାଏ (ରୋପିତ ହୁଏ) । କିନ୍ତୁ ଗର୍ଭନଳୀ ବେଶିଦିନ କ୍ରମ ବର୍ଦ୍ଧିଷ୍ଣୁ ଗର୍ଭପିଣ୍ଡକୁ ଧରି ରଖି ପାରେ ନାହିଁ । ଗର୍ଭ ୨ -୩

ମାସ ହେବା ବେଳକୁ ଡିମ୍ବବାହୀ ନଳୀ ଫାଟିଯାଇ ଅତ୍ୟଧିକ ପରିମାଣର ରକ୍ତସ୍ରାବ ହୋଇଥାଏ । ଗର୍ଭାଶୟ ବାହାରେ ଭ୍ରୂଣ ପିଣ୍ଡର ସ୍ଥାପନ ଏକ ଗୁରୁତର ସମସ୍ୟା । ରକ୍ତକ୍ଷୟ ଯୋଗୁଁ ଯେ କୌଣସି ସମୟରେ ମାଆର ମୃତ୍ୟୁ ହେବାର ଭୟ ଖୁବ୍ ବେଶି ଥାଏ । ଏପରି ଅବସ୍ଥାରେ ମାଆକୁ ବଞ୍ଚାଇବାର ଏକମାତ୍ର ଉପାୟ ହେଉଛି– ଗର୍ଭାଧାନ ଯେଉଁ ଡିମ୍ବବାହୀ ନଳୀରେ ସ୍ଥାପିତ ହୋଇଛି ତାକୁ ପ୍ରଥମ ଅବସ୍ଥାରୁ ଚିହ୍ନଟ କରି ତାର ପ୍ରତିକାର ପାଇଁ ବ୍ୟବସ୍ଥା କରିବା ।




ଚିତ୍ର - ୪

ଡିମ୍ବବାହୀ ନଳୀ ଭିତରେ ଥିବା ବାଟକୁ ବନ୍ଦ କରି ଗର୍ଭ ସଞ୍ଚାରକୁ ବନ୍ଦ କରିବାର ପ୍ରଣାଳୀ ଆମ ଦେଶରେ ବହୁତ ଆଦର ଲାଭ କରିଛି । ପ୍ରସବ ଦ୍ୱାର ଏବଂ ଗର୍ଭାଶୟ ଗ୍ରୀବାକୁ ସଂଯୋଗ କରୁଥିବା ଅଂଶକୁ ପ୍ରସବ ନଳୀ କୁହାଯାଏ । ପ୍ରଜନନ କ୍ଷମ ବୟସରେ ଏହା ଏକ ନାଳୁଆ ତରଳ ପଦାର୍ଥଦ୍ୱାରା ଓଦା ରହେ । ଏଥିରେ ଅମ୍ଳଅଂଶ ଅଧିକ ଥିବାରୁ ଏହା ଯୌନାଙ୍ଗକୁ ଜୀବାଣୁ ସଂକ୍ରମଣରୁ ରକ୍ଷା କରେ । ଋତୁସ୍ରାବ ସମୟରେ ଗର୍ଭାଶୟରୁ ଆସୁଥିବା ରକ୍ତ ଯୋନି ନାଳୀ ଦେଇ ପ୍ରସବ ଦ୍ୱାରରେ ଦେଖାଦେଇଥାଏ ।

ଶରୀରର ବହିର୍ଭାଗରେ ଯେଉଁ ଯୌନ ଅଙ୍ଗଗୁଡ଼ିକ ଥାଏ ସେଗୁଡ଼ିକର ସମଷ୍ଟିକୁ ଯୋନି କପାଟ କୁହାଯାଏ । ଏଥିରେ ପ୍ରସବ ଦ୍ୱାର ମୂତ୍ର ନଳୀର ଶେଷ ଅଂଶ ମଧ୍ୟ ଅନ୍ତର୍ଭୁକ୍ତ ।

## ନିରାପଦ ମାତୃତ୍ୱ

ଗର୍ଭାବସ୍ଥାର ଏକ ନିର୍ଦ୍ଦିଷ୍ଟ ସ୍ୱାତନ୍ତ୍ର୍ୟ ରହିଥିବାରୁ ଏହି ଅବସ୍ଥାକୁ ହାଲୁକା ଭାବେ ଗ୍ରହଣ କରିବା ଅନୁଚିତ୍ । ଏହି ଅବସ୍ଥାରେ ଗର୍ଭବତୀ ମହିଳାର ଉପଯୁକ୍ତ ଯତ୍ନ ନେବା ନିତାନ୍ତ ଜରୁରୀ । ଏହି ସମୟରେ ଉପଯୁକ୍ତ ସ୍ୱାସ୍ଥ୍ୟସେବା ଓ ଯତ୍ନର ଅଭାବରୁ ଆମ ଦେଶରେ ପ୍ରତିବର୍ଷ ଲକ୍ଷାଧିକ ମାଆ ଓ ପ୍ରାୟ ପାଞ୍ଚଲକ୍ଷରୁ ଉର୍ଦ୍ଧ୍ୱ ନବଜାତ ଶିଶୁ ମୃତ୍ୟୁବରଣ କରୁଛନ୍ତି । ତେଣୁ ଏହି ଅବସ୍ଥାରେ ନିମ୍ନଲିଖିତ ବିଷୟ ପ୍ରତି ବିଶେଷ ଯତ୍ନବାନ ହେବା ଉଚିତ୍ ।

## ଶିଶୁ କନ୍ୟାର ଯତ୍ନ

- ଆଜିର କନ୍ୟା ସନ୍ତାନ ଭବିଷ୍ୟତର ଜନନୀ । ତେଣୁ ସେମାନଙ୍କର ସ୍ୱାସ୍ଥ୍ୟ, ଶିକ୍ଷା, ଖାଦ୍ୟପେୟ ପ୍ରତି ସ୍ୱତନ୍ତ୍ର ଧ୍ୟାନ ଦିଆଯିବା ଉଚିତ୍ ।

- ଝିଅଟିର ଶାରୀରିକ, ମାନସିକ ପୂର୍ଣ୍ଣତା ଆସିବା ପରେ, ଉପଯୁକ୍ତ ବୟସରେ ଅର୍ଥାତ୍ ୨ ୦ ବର୍ଷ ପରେ ହିଁ ଝିଅଟିକୁ ବିବାହ ଦେବା ଆବଶ୍ୟକ ।
- ବୈବାହିକ ଜୀବନର ମଧୁମୟତା ଉପଲବ୍ଧି କରିବା ନିମନ୍ତେ ଏବଂ ପାରିବାରିକ ଜୀବନକୁ ସୁଖମୟ କରିବା ପାଇଁ ବିବାହର ଅନ୍ତତଃ ତିନିବର୍ଷ ପରେ ଗର୍ଭଧାରଣ କରିବା ବାଞ୍ଛନୀୟ । ବିଳମ୍ବିତ ଗର୍ଭଧାରଣ ପାଇଁ ନବ ବିବାହିତ ଦମ୍ପତି ପରିବାର ନିୟନ୍ତ୍ରଣର ଅସ୍ଥାୟୀ ପଦ୍ଧତି ଅବଲମ୍ବନ କରିବା ଉଚିତ୍ ।

## ପ୍ରସବ କାଳୀନ ବିପଦ ଓ ତାର ନିରାକରଣ

- ଗର୍ଭାବସ୍ଥାରେ ନିୟମିତ ସ୍ୱାସ୍ଥ୍ୟସେବା ନିତାନ୍ତ ଜରୁରି ହୋଇଥାଏ । ପ୍ରତ୍ୟେକ ଗର୍ଭବତୀ ମହିଳା ନିକଟସ୍ଥ ସ୍ୱାସ୍ଥ୍ୟକେନ୍ଦ୍ରରେ ନିଜର ନାମ ପଞ୍ଜିକରଣ ଦ୍ୱାରା ଏହି ସେବା ପାଇବା ସହଜ ହୁଏ ।
- ନାମ ପଞ୍ଜିକରଣ ପରେ ନିୟମିତ ସ୍ୱାସ୍ଥ୍ୟ ପରୀକ୍ଷାଦ୍ୱାରା ଜଟିଳ ଅବସ୍ଥାର ଆଶୁ ପ୍ରତିକାର ମିଳେ । ଗର୍ଭଧାରଣ କରିବା ପରେ ପରେ ମାସକ ଅନ୍ତରରେ ଦୁଇଟି ଟିଟାନସ୍ ଟିକା ନେବା ଦରକାର ।
- ଉଚ୍ଚ ରକ୍ତଚାପ ଉଭୟ ମା ଓ ଶିଶୁ ପ୍ରତି ବିପଦଜନକ ହୋଇଥିବାରୁ ନିୟମିତ ରକ୍ତଚାପ ପରୀକ୍ଷା କରାଇ ନେବା ଉଚିତ ଓ ରକ୍ତହୀନତା ଦୂର କରିବା ପାଇଁ ରକ୍ତ କାରକ 'ଫଲିଫର' ବଟିକା ଅନ୍ତତଃ ତିନିମାସ ବା ଦରକାର ହେଲେ ଅଧିକ ଦିନ ଖାଇବା ପ୍ରୟୋଜନ । ସରକାରୀ ସ୍ୱାସ୍ଥ୍ୟ ସେବା କେନ୍ଦ୍ରମାନଙ୍କରେ ଏହା ମାଗଣାରେ ମିଳିଥାଏ ।
- ଗର୍ଭସ୍ଥ ଶିଶୁ ଠିକ୍‌ଭାବେ ବଢୁଛିକି ନାହିଁ ଏହା ମଧ ପରୀକ୍ଷା କରାଇ ନେବା

ଦରକାର ।

- ଗର୍ଭାବସ୍ଥାରେ ସ୍ୱାସ୍ଥ୍ୟ ପରୀକ୍ଷା ଦ୍ୱାରା ଗର୍ଭକାଳୀନ ଜଟିଳ ଅବସ୍ଥା, ଯଥା: ରକ୍ତସ୍ରାବ, ଅତ୍ୟଧିକ ବାନ୍ତି ଓ ଜ୍ୱର, ମୂର୍ଚ୍ଛା, ରକ୍ତହୀନତା, ଅତ୍ୟଧିକ ମୁଣ୍ଡବ୍ୟଥା (ଉଚ୍ଚ ରକ୍ତଚାପର ଲକ୍ଷଣ), ଓଜନ ନ ବଢ଼ିବା (ଗର୍ଭାବସ୍ଥାରେ ଅନ୍ତତଃ ୬ କିଲୋ ଓଜନ ବଢ଼ିବା ଉଚିତ), ଗୋଡ଼, ହାତ ଓ ମୁହଁ ଅସ୍ୱାଭାବିକ ଭାବେ ଫୁଲିଯିବା ଆଦି ପ୍ରସବକାଳୀନ ଜଟିଳାବସ୍ଥା ଆଦି ଏଡ଼ାଇବା ସମ୍ଭବ ହୋଇପାରିବ ।

## ଗର୍ଭାବସ୍ଥାରେ ଖାଦ୍ୟ, ବିଶ୍ରାମ, ପରିଷ୍କାର ପରିଚ୍ଛନ୍ନତା

ଗର୍ଭ ସମୟରେ ମାଆକୁ ପେଟପୂରା ଉପଯୁକ୍ତ ଖାଦ୍ୟ ଖାଇବାକୁ ଦେବା ଦରକାର । କଠିନ ପରିଶ୍ରମ କରିବାକୁ ନ ଦେଇ ହାଲୁକା କାମ କରିବାକୁ ଦେଇ ବିଶ୍ରାମ ଦେବା ଦରକାର । ଲୁଗାପଟା ବା ପୋଷାକ ଢ଼ିଲା, ହାଲୁକା ଓ ପରିଷ୍କାର ହେବା ଉଚିତ ।

ଗର୍ଭବତୀ ମହିଳା ଧୂମପାନ କଲେ, ମାଦକ ଦ୍ରବ୍ୟ ଖାଇଲେ ଗର୍ଭସ୍ଥ ଶିଶୁର କ୍ଷତି ହୋଇପାରେ । ତାଲିମ ପ୍ରାପ୍ତ ସ୍ୱାସ୍ଥ୍ୟକର୍ମୀଙ୍କ ଉପଦେଶ ବିନା କୌଣସି ଔଷଧ ଖାଇବା ଉଚିତ ନୁହେଁ ।

## ଜଟିଳ ଗର୍ଭପ୍ରସବ

ଜଟିଳ ଗର୍ଭପ୍ରସବ ନିମ୍ନଲିଖିତ କାରଣରୁ ହୋଇଥାଏ ।

ମା ହେବାକୁ ଯାଉଥିବା ମହିଳାଙ୍କ ବୟସ ୧୮ ବର୍ଷରୁ କମ୍ ଓ ୩୫ ବର୍ଷରୁ

ଊର୍ଦ୍ଧ୍ୱ ହୋଇଥିଲେ :

- ଶିଶୁ ଜନ୍ମର ବ୍ୟବଧାନ ଦୁଇବର୍ଷରୁ କମ୍ ହୋଇଥିଲେ ଏବଂ ଅଧିକ ସନ୍ତାନ ସନ୍ତତିର ଜନନୀ ହୋଇଥିଲେ :
- ମାଆର ପୂର୍ବରୁ ଗର୍ଭପାତ, ଗର୍ଭନଷ୍ଟ, ଠିକ୍ ସମୟ ପୂର୍ବରୁ ସନ୍ତାନ ପ୍ରସବ କିମ୍ବା ଅସ୍ତ୍ରୋପ୍ରଚାର ଦ୍ୱାରା ଜନ୍ମ ପ୍ରକ୍ରିୟା ହୋଇଥିଲେ :
- ଗର୍ଭଧାରଣ ପୂର୍ବରୁ ମା'ର ଓଜନ ୩୮ କିଲୋଗ୍ରାମରୁ କମ ହୋଇଥିଲେ :
- ଗର୍ଭବତୀ ମହିଳାର ଉଚ୍ଚତା ୧୪୫ ସେ:ମି:ରୁ କମ୍ ହୋଇଥିଲେ ।

## ତାଲିମ ପ୍ରାପ୍ତ ବ୍ୟକ୍ତିଙ୍କ ସାହାଯ୍ୟ

ନିରାପଦ ପ୍ରସବ ପାଇଁ କେବଳ ତାଲିମପ୍ରାପ୍ତ ବ୍ୟକ୍ତିଙ୍କ ସାହାଯ୍ୟ ନେବା ଆବଶ୍ୟକ । ପ୍ରଥମ ଗର୍ଭ ଓ ପୂର୍ବରୁ ଜଣାପଡ଼ିଥିବା ନିଶ୍ଚିତ ଜଟିଳ ପ୍ରସବ କାର୍ଯ୍ୟ ସ୍ୱାସ୍ଥ୍ୟ କେନ୍ଦ୍ରରେ, ତାଲିମପ୍ରାପ୍ତ ବିଶେଷଜ୍ଞଙ୍କ ସାହାଯ୍ୟରେ ସମ୍ପନ୍ନ କରିବା ଉଚିତ ।

## ପ୍ରସବ ପରବର୍ତ୍ତୀ ଅବସ୍ଥାରେ ଯତ୍ନ

- ଜନ୍ମ ପରେ ଉପଯୁକ୍ତ ଯତ୍ନ ଅଭାବରୁ ମାଆ ଓ ପିଲା ମୃତ୍ୟୁ ମୁଖରେ ପଡ଼ିବାର ସମ୍ଭାବନା ବଢ଼ିଯାଇଥାଏ । ପ୍ରସବ ପରେ ପରେ ଜନ୍ମ ପଞ୍ଜିକରଣ କରାଇ ମା ଓ ଶିଶୁର ଉପଯୁକ୍ତ ଚିକିତ୍ସା କରାଇବା ଆବଶ୍ୟକ ।
- ମାଆ ଓ ଶିଶୁ ଉଭୟଙ୍କର ସ୍ୱାସ୍ଥ୍ୟ ରକ୍ଷା ପାଇଁ ପରିବାର ନିୟନ୍ତ୍ରଣର ଅସ୍ଥାୟୀ ପଦ୍ଧତି ଗ୍ରହଣ କରି ପରବର୍ତ୍ତୀ ସନ୍ତାନର ବ୍ୟବଧାନ ଅତି କମ୍‌ରେ ତିନିବର୍ଷ ରଖିବା ଆବଶ୍ୟକ ।

ପାରିବାରିକ ଜୀବନକୁ ସୁଖମୟ କରିବା ନିମନ୍ତେ ଗୋଟିଏ ବା ଦୁଇଟି ସନ୍ତାନ ପରେ ପରିବାର ନିୟନ୍ତ୍ରଣର ସ୍ଥାୟୀ ପଦ୍ଧତି ଅବଲମ୍ବନ କରି ପରିବାରକୁ ସୀମିତ ରଖିବା ଆବଶ୍ୟକ ।

## ନିରାପଦ ଗର୍ଭପାତ

ଗର୍ଭସ୍ଥ ଶିଶୁ, ମା'ର ଶାରୀରିକ, ମାନସିକ ଓ ସାମାଜିକ ସ୍ୱାସ୍ଥ୍ୟରେ କୁପ୍ରଭାବ ପକାଇବାର ସମ୍ଭାବନା ଥିଲେ, ଗର୍ଭ ସଞ୍ଚାରର ତିନିମାସ ମଧ୍ୟରେ ସରକାରୀ ସ୍ୱୀକୃତିପ୍ରାପ୍ତ ଚିକିତ୍ସାଳୟରେ ସ୍ତ୍ରୀରୋଗ ବିଶେଷଜ୍ଞଙ୍କ ଦ୍ୱାରା ଗର୍ଭପାତ କରିବା ନିରାପଦ । ତାଲିମ ପାଇ ନଥିବା ବ୍ୟକ୍ତିଙ୍କ ଦ୍ୱାରା ଗର୍ଭପାତ କରିବା ଅବୈଧ ଓ ବିପଦଜନକ ।

ଉପଯୁକ୍ତ ସ୍ୱାସ୍ଥ୍ୟ ପରୀକ୍ଷା ଓ ସଠିକ ଚିକିତ୍ସା କରାଇ ବେଳହୁଁ ସାବଧାନ ରହିଲେ ସହସ୍ରାଧିକ ମାଆ ଓ ଶିଶୁର ଅକାଳ ମୃତ୍ୟୁ ଏଡ଼ାଇ ଦେଇ ହେବ ।

## ନବଜାତକର ଜନ୍ମ ପରେ

ପିଲାଟିଏ ଜନ୍ମଦେଲା ପରେ ମା'ର ମନ ଆନନ୍ଦରେ ପୂରି ଉଠେ । ପିଲାଟିକୁ ସୁସ୍ଥ ସବଳ ରଖିବା ପାଇଁ ମା' ତା'ର ସବୁ ସୁଖ ତ୍ୟାଗ କରିବାକୁ ଆଗେଇ ଆସେ । ନିଜ ପେଟରୁ କାଟି ଶିଶୁକୁ ଖାଇବାକୁ ଦିଏ । ଲୁଗାପଟାର ଅଭାବ ଶିଶୁ ଯେପରି ଅନୁଭବ ନ କରେ, ସେ ଦିଗରେ ଧ୍ୟାନ ଦିଏ । ଶିଶୁଟିକୁ ସୁସ୍ଥ ସବଳ ରଖିବା ପାଇଁ କେତୋଟି ଦିଗ ପ୍ରତି ଧ୍ୟାନ ଦେବାକୁ ହୁଏ । ସୁସ୍ଥ ଶରୀର ଓ ସୁସ୍ଥ ମନର ଗଠନ କରିବାକୁ ହେବ । ଏଥିପାଇଁ ଶିଶୁର ଜନ୍ମ ପରେ ପରେ ଯତ୍ନ ଦରକାର ।

ପିଲାଟି ଭୂମିଷ୍ଠ ହେବା ପରେ ପରେ ମା'ର ଉଷୁମ କୋମଳ ସ୍ପର୍ଶ ଖୋଜେ । ପିଲା ଏବଂ ମାଆ ପରସ୍ପରକୁ ଜାବୁଡ଼ି ଧରି ସ୍ୱର୍ଗୀୟ ଆନନ୍ଦ ପାଆନ୍ତି । ମା' ଶିଶୁଟିକୁ କ୍ଷୀର ପାନ କରାଇବା ସମୟରେ ଜଡ଼ାଇ ଧରେ, ଅନ୍ୟ ସମୟରେ କୋଳରେ ଧରେ, ଆଦର କରିବା ସମୟରେ ଶିଶୁକୁ ନିଜ ଦେହରେ ଜଡ଼ାଇ ରଖେ । ବୈଜ୍ଞାନିକମାନେ ଲକ୍ଷ୍ୟ କରିଛନ୍ତି ଯେ ଜନ୍ମର ପରେ ପରେ ଏପରି ସ୍ପର୍ଶ ଶିଶୁର ମାନସିକ ବିକାଶରେ ସାହାଯ୍ୟ କରେ । ଏପରି ଅନୁଭବ ପାଇ ନଥିବା ଶିଶୁମାନେ ପରେ କେତେକ ସମସ୍ୟା ଦେଖାନ୍ତି । ବିଶେଷ କରି ଏପରି ପିଲାମାନଙ୍କର ସାମାଜିକ ବ୍ୟବହାରରେ ଅଭାବ ଦେଖାଯାଏ ।



ଚିତ୍ର - ୪(କ)

ପ୍ରତ୍ୟେକ ମାଆ ଶିଶୁର ଚାହିଦା ପ୍ରତି ସଜାଗ ଦୃଷ୍ଟି ଦେବା ଉଚିତ । ଏହାର ଅର୍ଥ ନୁହେଁ ଯେ ମା ସବୁବେଳ ନିଜ ଶିଶୁକୁ କୋଳରେ କାଖରେ ରଖିଥିବ । ଅନ୍ୟ କିଛି ବିଷୟ ନ ବୁଝି କେବଳ ନବଜାତ ଶିଶୁଟିର କଥା ବୁଝିବା ପାଇଁ କୁହାଯାଉନାହିଁ ।

ନବଜାତ ଶିଶୁଟିଏ ଜନ୍ମନେବା ପରେ ପରେ ବାହାର ଜଗତ ବିଷୟରେ କିଛି ଜାଣି ନଥାଏ । ପରିବେଶ ଓ ପରିସ୍ଥିତି ତା ପାଇଁ ସମ୍ପୂର୍ଣ୍ଣ ନୂଆ । ବାହାର ଘଟଣାରେ କିଛି ସ୍ଥିରତା ଅଛି କି ନାହିଁ ଜାଣି ପାରେ ନାହିଁ । ସେ ଧୀରେ ଧୀରେ ମା'ର ସେବା ଭରସାକୁ ଅନୁଭବ କରେ । ଭୋକ ବେଳେ ଖାଇବାକୁ ମିଳୁଛି, ବିଛଣା ଓଦା ହୋଇ ଶୀତ ଲାଗିଲେ ବିଛଣା ବଦଳା ହେଉଛି, ଦେହରେ ଏଣୁତେଣୁ ଜିନିଷ ଲାଗି ଖରାପ ଲାଗିଲେ ସଫା ହେଉଛି । ଏହିସବୁ ଅନୁଭବ ଫଳରେ ଶିଶୁମନରେ ଧାରଣା ଆସେ ଯେ ବାହାର ଜଗତର ଘଟଣା ସବୁ ଆକସ୍ମିକ ନୁହେଁ । ଘଟଣାଗୁଡ଼ିକରେ କିଛିଟା ସ୍ଥିରତା ରହିଛି । ଆଶା ପୂରଣ ହେବାର ସମ୍ଭାବନା ଅଛି ।

ଶିଶୁର ଆବଶ୍ୟକତା ପୂରଣ ପାଇଁ ମା' ସବୁବେଳେ ସଜାଗ ରହିବା ଫଳରେ ଏହା ସମ୍ଭବ ହୁଏ । ଶିଶୁ ମନର ବିକାଶକୁ ଲକ୍ଷ୍ୟ କରି ବୈଜ୍ଞାନିକମାନେ କହନ୍ତି ଯେ ଏହି ଅଳ୍ପବୟସରେ ଶିଶୁ ବିଶ୍ୱାସ ଓ ଅବିଶ୍ୱାସ ମଧ୍ୟରେ ଗତି କରୁଥାଏ । ନିଜର ମାଆ ସହାନୁଭୂତିଶୀଳା ହେଲେ ଶିଶୁଟି ବୁଝେ ଯେ ଅନ୍ୟମାନଙ୍କ ଉପରେ ମଧ୍ୟ ଆସ୍ଥା ରଖିହେବ । ନିଜ ମାଆ ପାଖରୁ ସେ ଯେଉଁ ବିଶ୍ୱାସବୋଧ ଶିଖେ ତାହା ବାହାର ଜଗତକୁ ବିଛାଡି ହୋଇପଡ଼େ । ତେଣୁ ଶିଶୁଟିକୁ ଜନ୍ମ ଦେଲାପରେ ମା'କୁ ସତର୍କ ହେବାକୁ ପଡ଼ିବ । ଶିଶୁର ଚାହିଦାସବୁ ପ୍ରତି ଆଖିବୁଜି ଦେଲେ ଶିଶୁ ବିଶ୍ୱାସ କରିବ କାହାକୁ ? ତା'ର ଅବିଶ୍ୱାସ ବାହାର ଜଗତକୁ ମାଡ଼ିଚାଲିବ । ଅନ୍ୟମାନଙ୍କୁ ସନ୍ଦେହ ଆଖିରେ ଦେଖିଲେ ତା'ର ସାମାଜିକ ବ୍ୟବହାର ଭଲ ହେବ ନାହିଁ ।

ପରିଶେଷରେ କୁହାଯାଇ ପାରେ ଯେ ମା'ର କୋମଳ ସ୍ପର୍ଶ ଓ ସଜାଗତା ଶିଶୁ ମନରେ ବିଶ୍ୱାସବୋଧ ସୃଷ୍ଟି କରେ । ଏହି ବିଶ୍ୱାସ ଧୀରେ ଧୀରେ ପରିବାର ଓ ସମାଜ ପାଇଁ ସୃଷ୍ଟି ହୁଏ । ଶିଶୁ ବଡ଼ ହେଲେ ପରିବାର ବାହାରେ ଥିବା ଲୋକମାନଙ୍କ ଉପରେ ଆସ୍ଥା ରଖିବା ଗୁଣ ଶିଖେ । ଜୀବନରେ ଅନ୍ୟ ସବୁ ଘଟଣାରେ ସ୍ଥିରତା ରହିଛି । ଅସୁବିଧା ସବୁ ଦୂର କରିବାରେ କିଛିଟା ନିୟନ୍ତ୍ରଣ ରହିଛି । ଏହି ବିଶ୍ୱାସବୋଧ ପରବର୍ତ୍ତୀ ଜୀବନକୁ ସୁନ୍ଦର ରୂପ ଦିଏ ।



# ଗର୍ଭନିରୋଧ ବ୍ୟବସ୍ଥା

ଯେଉଁ ସ୍ୱେଚ୍ଛାକୃତ ଉପାୟଦ୍ୱାରା ଗର୍ଭ ସଂଚାରକୁ ଏଡ଼େଇ ହୁଏ ତାକୁ ଗର୍ଭ ନିରୋଧ ବା ଜନ୍ମ ନିୟନ୍ତ୍ରଣ ପ୍ରଣାଳୀ କୁହାଯାଏ । ଗର୍ଭନିରୋଧ କରିବାର ଏକାଧିକ ପ୍ରଣାଳୀ ରହିଛି । ସେଗୁଡ଼ିକ ମଧ୍ୟରୁ ଯେକୌଣସି ଗୋଟିଏ ପ୍ରଣାଳୀ ଗ୍ରହଣ କରି ସ୍ୱାମୀ ସ୍ତ୍ରୀ ସେମାନଙ୍କର ସନ୍ତାନ ସଂଖ୍ୟା ଏବଂ ସେମାନଙ୍କର ଜନ୍ମରେ ବ୍ୟବଧାନ ନିର୍ଦ୍ଧାରିତ କରିପାରିବେ । ଗର୍ଭ ନିରୋଧ ପ୍ରଣାଳୀ ସାହାଯ୍ୟରେ କେବଳ ଯେ ଛୋଟ ପରିବାର ଗଠନ କରିହୁଏ ତା ନୁହେଁ, ଏହାଦ୍ୱାରା ମଧ୍ୟ ବିପଦ ସଙ୍କୁଳ ଗର୍ଭକୁ ଏଡ଼େଇ ମା ଓ ଶିଶୁ ସ୍ୱାସ୍ଥ୍ୟର ଉନ୍ନତି ସମ୍ଭବ ହୁଏ । ଦୁଇଟି ସନ୍ତାନ ମଧ୍ୟରେ ଯଥେଷ୍ଟ ବ୍ୟବଧାନ ରଖିଲେ ପିଲାମାନେ ସୁସ୍ଥ ସବଳ ହୋଇ ଜନ୍ମ ହୁଅନ୍ତି ଏବଂ ଆଦର ଯତ୍ନ ପାଇ ଭଲ ମଣିଷ ହୁଅନ୍ତି ।

## ଜନ୍ମ ନିରୋଧ ପ୍ରଣାଳୀ :

ଆଧୁନିକ ଜନ୍ମ ନିରୋଧ ଉପାୟକୁ ବ୍ୟବହାରିକ ଦୃଷ୍ଟିରୁ ଦୁଇ ଭାଗରେ ବିଭକ୍ତ କରାଯାଇଅଛି ।

୧. ଅସ୍ଥାୟୀ ବା ସାମୟିକ ପ୍ରଣାଳୀ

୨. ସ୍ଥାୟୀ ପ୍ରଣାଳୀ

## ୧. ଅସ୍ଥାୟୀ ବା ସାମୟିକ ପ୍ରଣାଳୀ :

ଯେଉଁ ଗର୍ଭ ନିରୋଧ ବ୍ୟବସ୍ଥାଦ୍ୱାରା ଗର୍ଭ ସଂଚାରକୁ କିଛି ଦିନ ପାଇଁ ବନ୍ଦ କରିଦିଆଯାଇପାରେ ତାକୁ **ଅସ୍ଥାୟୀ** ବା ସାମୟିକ ଗର୍ଭ ନିରୋଧ ପ୍ରଣାଳୀ କହନ୍ତି । ଏହି ଉପାୟର ଏକ ବିଶେଷ ସୁବିଧା ହେଉଛି ଯେ ଏହି ଉପାୟ ବ୍ୟବହାର କରୁଥିବା

ପର୍ଯ୍ୟନ୍ତ ଗର୍ଭ ସଂଚାରର ଭୟ ନଥାଏ । ମାତ୍ର ସ୍ୱାମୀ ଓ ସ୍ତ୍ରୀ ଉଭୟ ଯେତେବେଳେ ଆଉ ଗୋଟିଏ ସନ୍ତାନ ଇଚ୍ଛା କରନ୍ତି, ନୂତନ ଗର୍ଭ ସଂଚାର ସମ୍ଭବ ହୁଏ । ତା'ଛଡ଼ା ଗର୍ଭ ଧାରଣ କରିବା ପରେ ଶିଶୁର ସ୍ୱାସ୍ଥ୍ୟ ଉପରେ କୌଣସି ପ୍ରକାର କୁପ୍ରଭାବ ପକାଏ ନାହିଁ ।



ପୁରୁଷମାନଙ୍କ ପାଇଁ ନିରୋଧ

ଚିତ୍ର - ୫

ଗର୍ଭ ନିରୋଧ ଖାଇବା ବଟିକା, ଇଞ୍ଜେକ୍ସନ୍, ଆନ୍ତଃ ଗର୍ଭାଶୟ ଗର୍ଭ ନିରୋଧ ଉପାୟ (କପର-ଟି), ପ୍ରତିବନ୍ଧକ ବ୍ୟବସ୍ଥା (କଣ୍ଡୋମ୍, ଡାଇଫ୍ରାମ୍) ଏବଂ ଶୁକ୍ରାଣୁ ନାଶକ ରାସାୟନିକ ପଦାର୍ଥ (ଫୋମ୍, ବଟିକା, ଜେଲି) ସାମୟିକ ଗର୍ଭ ନିରୋଧ ଉପାୟ ଭାବରେ ବ୍ୟବହାର କରାଯାଏ । ଏଗୁଡ଼ିକ ମଧ୍ୟରୁ କଣ୍ଡୋମ୍ ବା ନିରୋଧ ପୁରୁଷମାନଙ୍କ ପାଇଁ ଓ ଅନ୍ୟ ଉପାୟଗୁଡ଼ିକ ନାରୀମାନଙ୍କ କ୍ଷେତ୍ରରେ ପ୍ରଯୁଜ୍ୟ । କେତେକ ଦମ୍ପତି ଗର୍ଭ ସଂଚାରକୁ ଏଡ଼ାଇବା ପାଇଁ କୌଣସି ବାହ୍ୟ ବ୍ୟବସ୍ଥା ଗ୍ରହଣ ନ କରି ପ୍ରାକୃତିକ ଉପାୟର ଆଶ୍ରୟ ନେଇଥାଆନ୍ତି ।

## (କ) ଗର୍ଭ ନିରୋଧ ଖାଇବା ବଟିକା :

ସାମୟିକ ଗର୍ଭ ନିରୋଧ ପଦ୍ଧତିଗୁଡ଼ିକ ମଧ୍ୟରେ ଖାଇବା ବଟିକା ଗୋଟିଏ ନିର୍ଭର ଯୋଗ୍ୟ ପ୍ରଣାଳୀ । ଆଜିକାଲି ବିଭିନ୍ନ ପ୍ରକାର ଖାଇବା ବଟିକା ମିଳୁଛି । ମାଲା-ଏନ୍, ମାଲା-ଡ଼ି, ପର୍ଲ, ସହେଲୀ ଇତ୍ୟାଦି) । ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ମାଧ୍ୟମରେ ଯେଉଁ ବଟିକା ମିଳୁଛି ତାହା ମିଶ୍ରିତ ବଟିକା । ଏହା ରାସାୟନିକ ପ୍ରଣାଳୀଦ୍ୱାରା ପ୍ରସ୍ତୁତ ହେଉଥିବା ହର୍‌ମୋନ୍‌ରୁ ତିଆରି । ଏହି ବଟିକା ବିନା ମୂଲ୍ୟରେ ମିଳିଥାଏ । ଏହାକୁ ବ୍ୟବହାର କରୁଥିବା ମହିଳାମାନେ ଗର୍ଭ ନିରୋଧ କରିବା ସଙ୍ଗେ ସଙ୍ଗେ ଅନ୍ୟ କେତେକ ଆନୁସଙ୍ଗିକ ସୁବିଧା ହାସଲ କରିଥାଆନ୍ତି, ଯଥା–

- ଋତୁସ୍ରାବ ଅନିୟମିତ ଥିଲେ ତାହା ଠିକ୍ ହୋଇଯାଏ ।
- ଋତୁସ୍ରାବର ପରିମାଣ ଅଧିକ ହେଉଥିଲେ ତାହା କମିଯାଏ ।
- ଋତୁସ୍ରାବ ସମୟରେ ତଳି ପେଟରେ ଯନ୍ତ୍ରଣା ହେଉଥିଲେ ସେଥିରୁ ଉପଶମ ମିଳେ ।

ଜଣେ ସ୍ୱାଭାବିକ ସୁସ୍ଥ ମହିଳା ଯେତେଦିନ ପର୍ଯ୍ୟନ୍ତ ଗର୍ଭନିରୋଧ କରିବାକୁ ଚାହିଁବେ ସେତେଦିନ ପର୍ଯ୍ୟନ୍ତ ଏହି ବଟିକା ଖାଇ ପାରିବେ । ପୁଣି ଯେତେବେଳେ ପିଲାଟିଏ ଚାହିଁବେ ବଟିକା ଖାଇବା ବନ୍ଦ କରିଦେଲେ ଗର୍ଭବତୀ ହୋଇପାରିବେ । ବଟିକାର ବ୍ୟବହାର ମାଆ କିମ୍ବା ଶିଶୁର ସ୍ୱାସ୍ଥ୍ୟ ଉପରେ ଖରାପ ପ୍ରଭାବ ପକାଏ ନାହିଁ । ଏହି ବଟିକା ଗୁଡ଼ିକ କାଗଜ ଫଏଲରେ ମିଳେ । ପ୍ରତ୍ୟେକ ଫଏଲରେ ଅଠେଇଶଟି ଲେଖାଁଏ ବଟିକା ଥାଏ । ସେଥିରୁ ଏକୋଇଶଟିରେ ହରମୋନ୍ ଥାଏ ଏବଂ ଅନ୍ୟ ସାତଟିରେ ହର୍‌ମୋନ୍ ନ ଥାଏ । ଗର୍ଭ ନିରୋଧ କରିବା ପାଇଁ ପ୍ରତି ମାସରେ ଋତୁସ୍ରାବ ଆରମ୍ଭ ହେବାର ୩-୪ ଦିନରୁ ୨୩-୨୪ ଦିନ ପର୍ଯ୍ୟନ୍ତ ହର୍‌ମୋନ୍ ବଟିକା ଖାଇବା ଦରକାର ପଡ଼ିଥାଏ । ହର୍‌ମୋନ୍ ବଟିକା ଖାଇ




ଗର୍ଭନିରୋଧ ଖାଇବା ବଟିକା

ଚିତ୍ର - ୬

ସାରିବାର ୨-୪ ଦିନ ମଧ୍ୟରେ ପୁନରାୟ ଋତୁସ୍ରାବ ଆରମ୍ଭ ହୁଏ । ଏହି ବଟିକାକୁ ନିୟମିତ ଭାବରେ ଖାଇବାକୁ ପଡ଼େ । ମଝିରେ ମଝିରେ ବଟିକା ଖାଇବାକୁ ଭୁଲିଗଲେ ଗର୍ଭ ସଂଚାର ହେବାର ଭୟ ଥାଏ ।

## ବଟିକା ଖାଇବା ଦ୍ୱାରା କିଛି ସମସ୍ୟା ହୁଏ କି ?

ବଟିକା ଖାଇବାର ପ୍ରଥମ ଅବସ୍ଥାରେ କେତେକ ଲକ୍ଷଣ ଦେଖାଦିଏ ଯଥା—

— ଅଇ ଉଠାଇବା ବା ବାନ୍ତି ଲାଗିବା

— ଦେହ ଭାରୀ ଭାରୀ ଲାଗିବା

— ଓଜନ ବଢ଼ିବା

— ସାମାନ୍ୟ ମୁଣ୍ଡ ବ୍ୟଥା ବା ମୁଣ୍ଡ ବୁଲାଇବା ଇତ୍ୟାଦି ।

ଏହି ଲକ୍ଷଣଗୁଡ଼ିକ ଦେଖି ଭୟ କରିବା ଉଚିତ୍ ନୁହେଁ । କାରଣ ବଟିକା ଖାଇବାର ୨ -୩ ମାସ ଭିତରେ ଏଗୁଡ଼ିକ ଆପେ ଆପେ ଦୂର ହୋଇଯାଏ । ବଟିକା ଖାଇବା ଆରମ୍ଭ କରିବା ପରେ ଯଦି କୌଣସି ଲକ୍ଷଣ ଦେଖାଦିଏ ତେବେ ବଟିକା ଖାଇବା ବନ୍ଦ ନ କରି ତହିଁର ଉପଶମ ପାଇଁ ସ୍ୱାସ୍ଥ୍ୟ କର୍ମଚାରୀଙ୍କ ସହିତ ପରାମର୍ଶ କରିବା ଉଚିତ୍ । ଧୈର୍ଯ୍ୟ ଧରି ଅପେକ୍ଷା କଲେ ଏହି ଲକ୍ଷଣଗୁଡ଼ିକ ଧୀରେ ଧୀରେ ଭଲ ହୋଇଯାଏ ।

## ବଟିକା ବିଷୟରେ କେତୋଟି ଜାଣିବା କଥା :

ଯଦିଓ ଗର୍ଭ ନିରୋଧ ବଟିକା ଖାଇଲେ ସ୍ୱାସ୍ଥ୍ୟହାନି ହେବାର ଭୟ ନାହିଁ, ତଥାପି ବଟିକା ଖାଉଥିବା ସମୟରେ ଯଦି ଋତୁସ୍ରାବରେ ବିଳମ୍ବ ହୁଏ, ମଝିରେ ମଝିରେ ପ୍ରସବ ଦ୍ୱାର ବାଟେ ରକ୍ତସ୍ରାବ ଲାଗି ରହେ କିମ୍ବା କ୍ରମାଗତ ମୁଣ୍ଡ ବୁଲାଏ ବା ବ୍ୟଥା ହୁଏ ତେବେ ଡାକ୍ତରଙ୍କ ସହିତ ପରାମର୍ଶ କରିବା ଉଚିତ୍ । ସ୍ତନ୍ୟପାନ କରାଉଥିବା ମା'ମାନେ ବଟିକା ଖାଇବା ଉଚିତ୍ ନୁହେଁ ।

ସ୍ତନ୍ୟପାନ କରାଉଥିବାରୁ ପ୍ରାକୃତିକ ଭାବେ ଏହି ମହିଳାମାନେ ଗର୍ଭ ଧାରଣରୁ ବଞ୍ଚିତ ଥାଆନ୍ତି । ଏଣୁ ଏ ପ୍ରକାର ମହିଳାମାନେ, ସେମାନଙ୍କର ଶିଶୁ ୬ ମାସ ହୋଇଗଲେ ସ୍ତନ୍ୟପାନ ମାତ୍ରା କମ୍ ହୋଇଯିବା ପରେ ଗର୍ଭ ନିରୋଧ ବଟିକା ବ୍ୟବହାର କରିପାରିବେ ।

## (ଖ) ଅନ୍ତଃ ଗର୍ଭାଶୟ ଗର୍ଭ ନିରୋଧ ଉପାୟ :

ସନ୍ତାନ ଜନ୍ମ ମଧ୍ୟରେ ଯଥେଷ୍ଟ ବ୍ୟବଧାନ ରଖିବା ପାଇଁ ଅନ୍ତଃ ଗର୍ଭାଶୟ

ପ୍ରଣାଳୀ ଗୋଟିଏ ଶସ୍ତା ଓ ସୁବିଧାଜନକ ଉପାୟ । ଭାରତ ବର୍ଷରେ ଏହି ବ୍ୟବସ୍ଥା ଏକ ପ୍ଲାଷ୍ଟିକ ପଦାର୍ଥର ପ୍ରୟୋଗରୁ ଆରମ୍ଭ ହୋଇଥିଲା । ମାତ୍ର ଆଜିକାଲି ଏଥିପାଇଁ ତମ୍ବାଧାତୁରୁ ପ୍ରସ୍ତୁତ ପଦାର୍ଥ ବ୍ୟବହାର କରାଯାଉଅଛି । ଏହାକୁ ଗର୍ଭାଶୟରେ ରଖିଦେଲେ ଏହା ଗର୍ଭାଶୟରେ ଥିବା ପର୍ଯ୍ୟନ୍ତ ଗର୍ଭ ସଂଚାର କରାଇ ଦିଏ ନାହିଁ । ଏହାକୁ ଅନ୍ତଃ ଗର୍ଭାଶୟ ଜନ୍ମ ନିରୋଧ ପ୍ରଣାଳୀ କହନ୍ତି । ମାଆ ଆଉ ଗୋଟିଏ ପିଲା ଇଚ୍ଛା କଲେ ''ତମ୍ବା ପଦ୍ଧତି''କୁ କାଢ଼ି ଦେବାପରେ ଗର୍ଭ ସଂଚାର ହୋଇଥାଏ । ଯେଉଁ ମହିଳାମାନେ ସାମୟିକ ଗର୍ଭ ନିରୋଧ କରିବାକୁ ଚାହାନ୍ତି କିମ୍ବା ନିୟମିତ ଭାବରେ ବଟିକା ଖାଇ ପାରିବେ ନାହିଁ, ସେମାନଙ୍କ ପାଇଁ ଏହା ଗୋଟିଏ ଭଲ ଉପାୟ ।

ସରକାରଙ୍କ ଦ୍ୱାରା ଯୋଗାଇ ଦିଆଯାଉଥିବା ଅନ୍ତଃ ଗର୍ଭ ନିରୋଧ ପ୍ରଣାଳୀକୁ 'କପର-ଟି' କୁହାଯାଏ । ଏହାର ଲମ୍ବା ଅଂଶର ତଳ ଭାଗରେ ଏକ ନାଇଲନ୍ ସୂତା କପର-ଟି ଠିକ୍ ଜାଗାରେ ଅଛି କି ନାହିଁ ତାହା ଜାଣିବାରେ ସାହାଯ୍ୟ କରେ । କପରଟି ପିନ୍ଧାଇବାର ସୁବିଧା ପ୍ରତ୍ୟେକ ସ୍ୱାସ୍ଥ୍ୟକେନ୍ଦ୍ରରେ ଥାଏ । ଆଜିକାଲି ସରକାରୀ ଯୋଗାଣ ବ୍ୟତୀତ ଅନ୍ୟ କେତେକ ବେସରକାରୀ ଅନୁଷ୍ଠାନ ମାଧ୍ୟମରେ ମହିଳାମାନଙ୍କୁ ଏହା ଯୋଗାଇ ଦିଆଯାଉଛି । କପର-ଟି ପିନ୍ଧାଇବା ପାଇଁ ଡାକ୍ତର କିମ୍ବା ମହିଳା ସ୍ୱାସ୍ଥ୍ୟ କର୍ମୀଙ୍କ ସାହାଯ୍ୟ ନେବାକୁ ପଡ଼େ । ମାସିକ ରକ୍ତସ୍ରାବ ହେବାର ୧୦ ଦିନ ଭିତରେ ଏହାକୁ ଗର୍ଭାଶୟରେ ରଖିଦିଆଯାଏ । କପର-ଟି କୁ ଥରେ ଗର୍ଭାଶୟରେ ରଖିଦେଲେ ୩ ବର୍ଷ ଯାଏ ଗର୍ଭ ସଂଚାର ହୁଏ ନାହିଁ । ଆଉ ଗୋଟିଏ ସନ୍ତାନ ଚାହିଁଲେ ଏଇଟିକୁ କାଢ଼ି ଦିଆଯାଏ ଏବଂ ତା'ପରେ ଗର୍ଭ ସଂଚାର ହୋଇଥାଏ । ତିନି ବର୍ଷ ପରେ କପର-ଟିର ଗର୍ଭ ନିରୋଧ କରିବାର ଶକ୍ତି ହ୍ରାସ

ପାଏ । ତେଣୁ ଯେଉଁ ମହିଳାମାନେ ଏହି ବ୍ୟବସ୍ଥାକୁ ଆହୁରି ଅଧିକ ଦିନ ପାଇଁ ବ୍ୟବହାର କରିବାକୁ ଚାହାନ୍ତି ସେମାନେ ତିନିବର୍ଷ ପରେ ପିନ୍ଧିଥିବା କପର-ଟିକୁ ବଦଳାଇ ଆଉ ଗୋଟିଏ ନୂଆ କପର-ଟି ପିନ୍ଧିବା ଆବଶ୍ୟକ । ସେମାନେ ବଜାରରୁ ମିଳୁଥିବା ଯେ କୌଣସି ଗୋଟିଏ ତମ୍ଧ୍ୟରୁ ପ୍ରସ୍ତୁତ ପ୍ରଣାଳୀ ଗ୍ରହଣ କରିପାରନ୍ତି । ଏପରି କ୍ଷେତ୍ରରେ ୫ ବର୍ଷ ଯାଏ ଗର୍ଭ ଧାରଣ କରିବାର ଭୟ ନଥାଏ ।

ଏତେ ସୁବିଧା ଥାଇ ମଧ୍ୟ ଗ୍ରାମାଞ୍ଚଳରେ ରହୁଥିବା ମହିଳାମାନେ କପର-ଟି ବ୍ୟବହାର କରିବା ପାଇଁ ଇଚ୍ଛା ପ୍ରକାଶ କରନ୍ତି ନାହିଁ । ସେମାନେ ଏହି ପଦ୍ଧତିକୁ ବହୁତ ଭୟ କରନ୍ତି । ସେମାନଙ୍କର ବିଶ୍ୱାସ ଯେ ''କପର-ଟି'' ବ୍ୟବହାର କଲେ ସ୍ୱାସ୍ଥ୍ୟହାନି ହୁଏ । ଏହି ଉପାୟ ସଂପର୍କରେ ଭ୍ରମଧାରଣା ଏଥିପାଇଁ ମୁଖ୍ୟତଃ ଦାୟୀ । ତେଣୁ ଏହି ଉପାୟକୁ ଆଦରି ନେବା ପୂର୍ବରୁ ଏହାଦ୍ୱାରା ମିଳୁଥିବା ସୁବିଧା ଅସୁବିଧା ବିଷୟରେ ସଚେତନ ରହିବା ବିଧେୟ ।

'କପର-ଟି' ପିନ୍ଧିବାର ପ୍ରଥମ କେତେ ଦିନ ତଳି ପେଟରେ ମୃଦୁ ଯନ୍ତ୍ରଣା ଅନୁଭୂତ ହୋଇପାରେ । କେତେକ ସ୍ଥଳେ ସାମାନ୍ୟ ରକ୍ତସ୍ରାବ ମଧ୍ୟ ଲକ୍ଷ୍ୟ



*ସ୍ତ୍ରୀ ମାନଙ୍କ ପାଇଁ କପର-ଟି*

ଚିତ୍ର - ୭

କରାଯାଏ । ସେଥିପାଇଁ ବ୍ୟସ୍ତ ହେବା ଅନୁଚିତ । କିଛି ଦିନ ପରେ ଉଭୟ ଉପସର୍ଗ ଆପେ ଆପେ ଉଭେଇ ଯାଏ । ତଳି ପେଟର ଯନ୍ତ୍ରଣା ବେଶି ଦିନ ଲାଗି ରହିଲେ କିମ୍ବା ରକ୍ତସ୍ରାବ ଅଧିକ ହେଲେ ଡାକ୍ତରଙ୍କ ସହିତ ପରାମର୍ଶ କରିବା ଭଲ । ସେ କପର-ଟି କାଢ଼ିବାକୁ କହିପାରନ୍ତି । ବେଳେବେଳେ କପର-ଟି ପିନ୍ଧିବାର ପରବର୍ତ୍ତୀ ମାସରେ ଋତୁସ୍ରାବ ଅଧିକ ହୋଇଥାଏ । ମାତ୍ର କିଛି ଦିନ ପରେ ତାହା ଆପେ ଆପେ ଠିକ୍ ହୋଇଯାଏ ।

ସବୁ ମହିଳାମାନଙ୍କ ପାଇଁ କପର-ଟି ନିରାପଦ ନୁହେଁ । ଯେଉଁମାନେ ପୂର୍ବରୁ ପ୍ରସବ ରାସ୍ତାର ପ୍ରଦାହ ରୋଗରେ ଆକ୍ରାନ୍ତ ହୋଇଥିବେ, ରକ୍ତହୀନତା ଭୋଗୁଥିବେ କିମ୍ବା ଯେଉଁମାନଙ୍କର ଗର୍ଭାଶୟ ରୋଗାକ୍ରାନ୍ତ ହୋଇଥିବ ସେମାନେ ଏ ପଦ୍ଧତି ଗ୍ରହଣ କରିବା ଉଚିତ ନୁହେଁ । ସେହିପରି ଯେଉଁ ମହିଳାମାନଙ୍କର ମାସିକ ଋତୁସ୍ରାବ ସମୟରେ ଅତ୍ୟଧିକ ରକ୍ତ କ୍ଷୟ ହେଉଥିବ କିମ୍ବା ଯେଉଁମାନେ ଆଦୌ ପିଲା ଜନ୍ମ କରି ନଥିବେ ସେମାନେ ଗର୍ଭ ନିରୋଧ ପାଇଁ 'କପର-ଟି' ଗ୍ରହଣ କରିବା ଉଚିତ ନୁହେଁ ।

## (ଗ) ପ୍ରତିବନ୍ଧକ ଉପାୟ :

ଯୌନ ସଂଗମ ସମୟରେ ବ୍ୟବହୃତ ପ୍ରତିବନ୍ଧକ ଉପାୟ ପୁରୁଷର ଯୌନ କୋଷ (ଶୁକ୍ରାଣୁ) ଗୁଡ଼ିକୁ ନାରୀର ଗର୍ଭାଶୟରେ ପ୍ରବେଶ କରିବାରେ ବାଧା ସୃଷ୍ଟି କରେ । ତେଣୁ ଗର୍ଭ ସଂଚାରର ସମ୍ଭାବନା ରହେ ନାହିଁ ।

କଣ୍ଡୋମ, ଡାଇଫ୍ରାମ ଏବଂ ଶୁକ୍ରାଣୁ ନାଶକ ରସାୟନ ପଦାର୍ଥ ଏହି ଶ୍ରେଣୀଭୁକ୍ତ ଗର୍ଭ ନିରୋଧକ ଅଟେ । ଆଜିକାଲି ମିଳୁଥିବା ବିଭିନ୍ନ ପ୍ରତିବନ୍ଧକ

ଉପାୟଗୁଡ଼ିକ ମଧ୍ୟରୁ କେବଳ ପୁରୁଷମାନଙ୍କ ପାଇଁ କଣ୍ଡୋମ (ନିରୋଧ) ବ୍ୟବହୃତ ହେଉଛି । ଏହା ପୁରୁଷମାନଙ୍କ ପାଇଁ ମିଳୁଥିବା ଏକ ମାତ୍ର ଅସ୍ଥାୟୀ ପ୍ରଣାଳୀ । ଏହା ଏକ ଶସ୍ତା ଏବଂ ସହଜ ଉପାୟ । ସହବାସ ସମୟରେ ଫାଟିଯିବାର ଆଶଙ୍କା ବହୁତ ଦମ୍ପତିଙ୍କୁ ଏହି ଉପାୟ ପାଇଁ ବିମୁଖ କରିଥାଏ । ଅବଶ୍ୟ ସୂକ୍ଷ୍ମ ରବରରୁ ପ୍ରସ୍ତୁତ ହେଉଥିବା ନିରୋଧ ବ୍ୟବହାର ବେଳେ ଫାଟି ଯିବାର ଭୟ ଥାଏ । ମାତ୍ର ଆଜିକାଲି ମିଳୁଥିବା ଲାଟେକ୍ସ ପଲିଥିନ୍‌ରୁ ପ୍ରସ୍ତୁତ କଣ୍ଡୋମ୍ (ନିରୋଧ) ବେଶି ମଜଭୁତ । ଯୌନ ସଙ୍ଗମ ବେଳେ ଏହା ଫାଟିବାର ସମ୍ଭାବନା ଖୁବ୍ କମ୍ । ଏଡ୍‌ସ୍ ରୋଗରୁ ରକ୍ଷା ପାଇବା ପାଇଁ ଏହା ଏକ ଉପାଦେୟ ପ୍ରଣାଳୀ ରୂପେ ସ୍ୱୀକୃତି ଲାଭ କରିଛି । ଯୌନ ସଙ୍ଗୀଙ୍କ ମଧ୍ୟରୁ ଜଣେ ଯୌନ ରୋଗ ଗ୍ରସ୍ତ କିମ୍ବା ଏଚ୍.ଆଇ.ଭି ଭୂତାଣୁର ବାହକ ହେବାର ଆଶଙ୍କା ଥିଲେ ଯୌନ କ୍ରିୟା ସମୟରେ ନିରୋଧର ବ୍ୟବହାର ନିରପତ୍ତା ଯୋଗାଇଥାଏ । ଏହି ସୁବିଧା ଅନ୍ୟ କୌଣସି ଗର୍ଭ ନିରୋଧକ ବ୍ୟବହାର ଦ୍ୱାରା ମିଳି ନଥାଏ ।

## (ଘ) ପ୍ରାକୃତିକ ଉପାୟରେ ଗର୍ଭ ନିରୋଧ :

ବିଭିନ୍ନ ଫଳପ୍ରଦ ପଦ୍ଧତି ମିଳିବା ସତ୍ତ୍ୱେ ଏବେ ବି ଏପରି କେତେକ ଦମ୍ପତି ଅଛନ୍ତି ଯେଉଁମାନେ କୌଣସି ବାହ୍ୟ ବ୍ୟବସ୍ଥା ଉପରେ ନିର୍ଭର ନ କରି ପ୍ରାକୃତିକ ଉପାୟରେ ଡିମ୍ବାଣୁ ଓ ଶୁକ୍ରାଣୁର ମିଳନରେ ବାଧା ସୃଷ୍ଟି କରି ଗର୍ଭ ସଂଚାରକୁ ଏଡ଼ାଇବାର ପ୍ରଚେଷ୍ଟା କରିଥାଆନ୍ତି । ଏହି ଉପାୟଗୁଡ଼ିକ ପ୍ରାକୃତିକ ବ୍ୟବସ୍ଥାର ପରିସରଭୁକ୍ତ ଅଟେ । ପିଲାକୁ କେବଳ ମା'କ୍ଷୀର ଦେବା ଦ୍ୱାରା ପ୍ରସବୋତ୍ତର ଅବସ୍ଥାର ପ୍ରାୟ ୬ ମାସ ପର୍ଯ୍ୟନ୍ତ ଡିମ୍ବାଣୁ କ୍ଷରଣ ହେବାର ସମ୍ଭାବନା ନ ଥାଏ ।



ଚିତ୍ର - ୮

ତେଣୁ ଏହି ସମୟରେ ମୈଥୁନ କ୍ରିୟା ଦ୍ୱାରା ଗର୍ଭ ସଂଚାର ହେବାର ସମ୍ଭାବନା କମ୍ ଥାଏ । ପିଲା ମା'ଠାରୁ କ୍ଷୀର ଖାଇବା ସମୟରେ ମା' ଦେହରୁ ହର୍ମୋନ୍ ବାହାରିଥାଏ । ଏହାର ପ୍ରଭାବ ଡିମ୍ବାଶୟରୁ ଡିମ୍ବାଣୁ କ୍ଷରଣ ବନ୍ଦ କରିଦିଏ । ଫଳରେ ମାଆର ଋତୁଚକ୍ର ହୁଏ ନାହିଁ । କେବଳ ସ୍ତନ୍ୟପାନ କରାଉଥିବା ମାଆମାନଙ୍କର ପିଲା ଜନ୍ମର ୪-୫ ମାସ ପର୍ଯ୍ୟନ୍ତ ଗର୍ଭ ସଂଚାର ହେବାର ଭୟ ନଥାଏ । କିନ୍ତୁ ମା' ଯଦି ସ୍ତନ କ୍ଷୀର ଖୁଆଇବା ବେଳେ ମଝିରେ ମଝିରେ ଅନ୍ୟ ଖାଦ୍ୟ ଖୁଆଉ ଥାଏ, ତେବେ ତା ଦେହରୁ ହରମୋନ୍ ପ୍ରଚୁର ପରିମାଣରେ ବାହାରି ପାରେ ନାହିଁ । ଫଳତଃ ପିଲା ଜନ୍ମର ଅଳ୍ପଦିନ ପରେ ଋତୁଚକ୍ର ଆରମ୍ଭ ହୁଏ ଏବଂ ଗର୍ଭ ସଂଚାର ହେବାର ସମ୍ଭାବନା ରହେ ।

## ୨ . ସ୍ଥାୟୀ ପ୍ରଣାଳୀ :

ପୁରୁଷ ବା ସ୍ତ୍ରୀ ଠାରେ କରାଯାଉଥିବା ସ୍ୱେଚ୍ଛାକୃତ ବନ୍ଧ୍ୟାକରଣ ଅସ୍ତ୍ରୋପଚାରକୁ ସ୍ଥାୟୀ ଗର୍ଭ ନିରୋଧ ଉପାୟ କୁହାଯାଏ । ପୁରୁଷମାନେ ଗ୍ରହଣ କରୁଥିବା ବନ୍ଧ୍ୟାକରଣ ଉପାୟକୁ 'ଭାସେକ୍ଟୋମି' (ପୁରୁଷ ବନ୍ଧ୍ୟାକରଣ) ଏବଂ ମହିଳାମାନଙ୍କ ପାଇଁ ଉଦ୍ଦିଷ୍ଟ ବନ୍ଧ୍ୟାକରଣ ଉପାୟକୁ 'ଟ୍ୟୁବେକ୍‌ଟୋମି' କୁହାଯାଏ ।

ଭାସେକ୍ଟୋମି ଏକ ସରଳ ଏବଂ ସହଜ ଉପାୟ । ଭାସେକ୍ଟୋମିରେ ପୁରୁଷର ବୀର୍ଯ୍ୟବାହୀ ନଳୀ ଭିତରେ ଥିବା ବାଟକୁ ବନ୍ଦ କରିଦିଆଯାଏ । ଛୁରୀ, କଇଁଚି ବ୍ୟବହାର ନ କରି ମଧ୍ୟ ଆଧୁନିକ ଅସ୍ତ୍ରୋପଚାର ପ୍ରଣାଳୀରେ ବୀର୍ଯ୍ୟବାହୀ ନଳୀରେ ଥିବା ବାଟକୁ ବନ୍ଦ କରାଯାଇ ପାରୁଛି । ତଥାପି ପୁରୁଷମାନେ ଏହାକୁ ଗ୍ରହଣ କରିବାକୁ କୁଣ୍ଠାବୋଧ କରୁଛନ୍ତି । ଅନେକଙ୍କର ଧାରଣା , ଭାସେକ୍ଟୋମି ପରେ ସେମାନେ ଦୁର୍ବଳ ହୋଇଯିବେ । ଶାରୀରିକ ପରିଶ୍ରମ କରିପାରିବେ ନାହିଁ । ଆଉ କେତେକଙ୍କର ବିଶ୍ୱାସ ସେମାନେ ତାଙ୍କର ପୁରୁଷତ୍ୱ ହରାଇ ବସିବେ । ଏହି ଧାରଣା ସଂପୂର୍ଣ୍ଣ ଭୁଲ । ଭାସେକ୍ଟୋମି କରାଇଥିବା ପୁରୁଷମାନଙ୍କର ପୁରୁଷତ୍ୱ ହାନି ହେବାର ଭୟ ଆଦୌ ନ ଥାଏ । ସେମାନଙ୍କର ସ୍ୱାସ୍ଥ୍ୟ ମଧ୍ୟ ଖରାପ ହୁଏନାହିଁ । ପୁରୁଷ ବନ୍ଧ୍ୟାକରଣ ଅସ୍ତ୍ରୋପଚାର ପରେ ମଧ୍ୟ ସେମାନେ ସୁସ୍ଥ ରହି ନିଜର କାମ ଧନ୍ଦା ପୂର୍ବ ପରି କରିପାରନ୍ତି ।

ଭାସେକ୍ଟୋମିକୁ ଗର୍ଭ ନିରୋଧ ପାଇଁ ଗ୍ରହଣ କରୁଥିବା ଦମ୍ପତି ଗୋଟିଏ କଥା ମନେ ରଖିବା ଆବଶ୍ୟକ । ଏହି ଉପାୟ ଗର୍ଭ ପ୍ରତିରୋଧ କରିବାକୁ ୩-୪ ମାସ ସମୟ ନେଇଥାଏ । କାରଣ ଶୁକ୍ରାଶୟରୁ ପ୍ରସ୍ତୁତ ହେଉଥିବା ଶୁକ୍ରାଣୁଙ୍କର ଆସିବା ବାଟ ବନ୍ଦ ହୋଇଥିଲେ ମଧ୍ୟ ରେତ ଥଳିରେ ଗଚ୍ଛିତ ଥିବା ଶୁକ୍ରାଣୁ ସହବାସ ସମୟରେ ନାରୀର ଜନନେନ୍ଦ୍ରିୟରେ ପହଞ୍ଚି ଗର୍ଭ ସଂଚାର କରାଇଥାଏ । ତେଣୁ



ପୁରୁଷ ବନ୍ଧ୍ୟାକରଣ                ସ୍ତ୍ରୀ ବନ୍ଧ୍ୟାକରଣ

ଚିତ୍ର - ୯

ରେତ ଥଳୀ ଶୁକ୍ରକୀଟ ଶୂନ୍ୟ ନ ହେବାଯାଏ ସହବାସ ସମୟରେ କଣ୍ଡୋମ କିମ୍ବା ଅନ୍ୟ ଏକ ଗର୍ଭ ନିରୋଧ ପ୍ରଣାଳୀ ବ୍ୟବହାର କରିବାକୁ ପଡ଼ିଥାଏ । ରେତ ଥଳୀରେ ଶୁକ୍ର କୀଟ ଅଛନ୍ତି କି ନାହିଁ ତାହା ପୁରୁଷର ବୀର୍ଯ୍ୟ (ଧାତୁ) ପରୀକ୍ଷା କରାଇଲେ ଜଣାପଡ଼େ ।

ମହିଳାମାନଙ୍କର ବନ୍ଧ୍ୟାକରଣ ଅସ୍ତ୍ରୋପଚାର ଦ୍ୱାରା ଡିମ୍ବବାହୀ ନଳୀର ବାଟ ବନ୍ଦ କରିଦିଆଯାଏ । ଏହା ଦ୍ୱାରା ଶୁକ୍ରକୀଟ ଗୁଡ଼ିକ ନାରୀର ଜନନେନ୍ଦ୍ରିୟରେ ପ୍ରବେଶ କଲେ ମଧ୍ୟ ଡିମ୍ବାଣୁ ନିକଟରେ ପହଞ୍ଚି ପାରନ୍ତି ନାହିଁ । ତେଣୁ ଗର୍ଭାଧାନ ହୁଏ ନାହିଁ । ଆଜିକାଲି ମହିଳାମାନଙ୍କର ବନ୍ଧ୍ୟାକରଣ ଅସ୍ତ୍ରୋପଚାର ପାଇଁ ଦୁଇଟି ଉପାୟ ବ୍ୟବହୃତ ହେଉଛି ।

ଗୋଟିଏ ହେଲା— ତଳିପେଟରେ ଗୋଟିଏ ଛୋଟ କଣା କରି ସେଇ ବାଟରେ

ଡିମ୍ବବାହୀ ନଳୀକୁ କାଢ଼ି ତହିଁର କିଛି ଅଂଶ କାଟି ଦେବା ଏବଂ

ଅନ୍ୟଟି ହେଉଛି- ଲାପାରୋସ୍କୋପି ଯନ୍ତ୍ର ସାହାଯ୍ୟରେ ଡିମ୍ବବାହୀ ନଳୀରେ କ୍ଲିପ ଲଗାଇ ଏଥିରେ ଥିବା ବାଟ ଅବରୋଧ କରିବା ।

ଲାପାରୋସ୍କୋପି ବ୍ୟବହାର କରିବା ପୂର୍ବରୁ ନାଭି ପାଖରେ ଗୋଟିଏ ଛିଦ୍ର କରିବାକୁ ପଡ଼ିଥାଏ । ତାପରେ ସେଇବାଟେ ଲାପାରୋସ୍କୋପକୁ ପେଟ ଭିତରେ ପୂରାଇ ଡିମ୍ବବାହୀ ନଳୀକୁ ଚିହ୍ନଟ କରି ତହିଁରେ ଗୋଟିଏ କ୍ଲିପ୍ ଲଗାଯାଏ । ଏହି ଅସ୍ତ୍ରୋପଚାର ପାଇଁ ସୂକ୍ଷ୍ମ ଯନ୍ତ୍ରପାତି ଏବଂ ତାଲିମ ପ୍ରାପ୍ତ ଡାକ୍ତରଙ୍କର ଆବଶ୍ୟକତା ଥାଏ । ସେଥିପାଇଁ ଏହି ପ୍ରଣାଳୀ ଆମ ଗାଁ ଗହଳରେ ବିଶେଷ ଭାବରେ ଆଦୃତ ହୋଇ ପାରିନି । ପ୍ରସବୋତ୍ତର ଅବସ୍ଥାରେ ବନ୍ଧ୍ୟାକରଣ ଅସ୍ତ୍ରୋପଚାର କରାଉଥିବା ନାରୀମାନଙ୍କ ପାଇଁ ଏହା ଉପଯୋଗୀ ନୁହେଁ ।

ବନ୍ଧ୍ୟାକରଣ ଅସ୍ତ୍ରୋପଚାର ମହିଳାମାନଙ୍କ ସାଧାରଣ ସ୍ୱାସ୍ଥ୍ୟ ଉପରେ କୌଣସି କୁ ପ୍ରଭାବ ପକାଏ ନାହିଁ । ଅବଶ୍ୟ ଅସ୍ତ୍ରୋପଚାର ସମୟରେ ଏବଂ ତାପରେ ଅସ୍ତ୍ରୋପଚାର ହୋଇଥିବା ଅଂଶରେ ଯେପରି ଜୀବାଣୁ ସଂକ୍ରମଣ ନ ହୁଏ ସେଥିପାଇଁ ବିହିତ ପଦକ୍ଷେପ ନେବା ଆବଶ୍ୟକ । ବିଶେଷତଃ ବ୍ୟକ୍ତିଗତ ପରିଷ୍କାର ପରିଚ୍ଛନ୍ନତା ପ୍ରତି ବିଶେଷ ଧ୍ୟାନ ଦେବାକୁ ପଡ଼ିଥାଏ । ଏଥିରେ ଅବହେଳା କଲେ ତାହା ବସ୍ତି କୋଟରୀକୁ ସଂକ୍ରମିତ କରି ପରବର୍ତ୍ତୀ ସମୟରେ ବିଭିନ୍ନ ଅସୁବିଧା ସୃଷ୍ଟି କରେ । ଅନୁଭୂତିରୁ ଜଣାପଡ଼େ ଯେ ଅସ୍ତ୍ରୋପଚାର କରାଉଥିବା ମହିଳାମାନେ ଯେ କୌଣସି ଶାରୀରିକ ଅସୁସ୍ଥତା ଭୋଗ କଲେ ତାହା ବନ୍ଧ୍ୟାକରଣ ଅସ୍ତ୍ରୋପଚାର ଯୋଗୁଁ ହେଲା ବୋଲି ଭାବନ୍ତି । ସେମାନଙ୍କର ଧାରଣା ମୁଣ୍ଡ ବ୍ୟଥା ଠାରୁ ଆରମ୍ଭ କରି ଆଣ୍ଠୁଗଣ୍ଠି ଦରଜ ହେବା, ଆଖିକୁ ଦେଖା ନ ଯିବା ଏପରି କି

ଖାଦ୍ୟ ହଜମ ନ ହେବା ସବୁ କିଛି ଅସ୍ତ୍ରୋପଚାର ଯୋଗୁଁ ହେଉଛି । ଏହି ଧାରଣା ସଂପୂର୍ଣ୍ଣ ଭୁଲ । ଅସ୍ତ୍ରୋପଚାର ପୂର୍ବରୁ ସେ ସଂପର୍କରେ ସମସ୍ତ ତଥ୍ୟ ନ ଜାଣିବା ଏବଂ ଅସ୍ତ୍ରୋପଚାର ପରେ ନିୟମିତ ଅନୁଧ୍ୟାନ ଅଭାବରୁ ଏପରି ଭ୍ରମ ଧାରଣା ଜାତ ହୋଇଥାଏ । କେବଳ ସମ୍ବେଦନଶୀଳ ଆଶ୍ୱାସନା ବହୁ ମହିଳାଙ୍କ ମନରୁ ଭୟ ଦୂର କରିବାର ଦୃଷ୍ଟାନ୍ତ ବିରଳ ନୁହେଁ ।

ବନ୍ଧ୍ୟାକରଣ ଅସ୍ତ୍ରୋପଚାର ପୂର୍ବରୁ ଦମ୍ପତି ଭଲ ଭାବରେ ଜାଣିବା ଉଚିତ ଯେ ନିର୍ମଳ ପରିବେଶ ଏବଂ ଅଭିଜ୍ଞ ଡାକ୍ତରଙ୍କ ଦ୍ୱାରା କରାଯାଉଥିବା ବନ୍ଧ୍ୟାକରଣ ଅସ୍ତ୍ରୋପଚାର ମହିଳାଙ୍କ ସ୍ୱାସ୍ଥ୍ୟ ଉପରେ କୌଣସି କୁ ପ୍ରଭାବ ପକାଏ ନାହିଁ । ଅବଶ୍ୟ ଜୀବାଣୁ ଜନିତ ବସ୍ତି କୋଟରୀର ପ୍ରଦାହକୁ ଏଡ଼ାଇବା ପାଇଁ ତାକୁ କିଛି ଦିନ ପାଇଁ ବ୍ୟକ୍ତିଗତ ପରିଷ୍କାର ପରିଚ୍ଛନ୍ନତା ପ୍ରତି ଦୃଷ୍ଟି ଦେବାକୁ ପଡ଼ିଥାଏ ।

ବନ୍ଧ୍ୟାକରଣ ଅସ୍ତ୍ରୋପଚାର ପୂର୍ବରୁ ଦମ୍ପତି ଭଲଭାବରେ ଜାଣିବା ଉଚିତ୍ ଯେ ଗର୍ଭ ନିରୋଧ ଅସ୍ତ୍ରୋପଚାର ଏକ ସ୍ଥାୟୀ ପଦ୍ଧତି । ଅସ୍ତ୍ରୋପଚାର କରାଉଥିବା ନାରୀ ଯଦି କୌଣସି କାରଣରୁ ପୁଣି ଗର୍ଭବତୀ ହେବାକୁ ଚାହେଁ ତାହେଲେ ତାର କଟା ହୋଇଥିବା ଦୁଇଟି ଡିମ୍ବବାହୀ ନଳୀକୁ ପୁନର୍ବାର ଯୋଡ଼ିବା ଦରକାର । ଏହା ଏକ ସୂକ୍ଷ୍ମ ଏବଂ ଜଟିଳ ଅସ୍ତ୍ରୋପଚାର । ଅସ୍ତ୍ରୋପଚାରର ସଫଳତା ପରେ ଯେ ତାର ଗର୍ଭ ସଂଚାର ହେବ ତାହା ମଧ୍ୟ ନିର୍ଦ୍ଦିଷ୍ଟ ଭାବରେ କୁହାଯାଇ ନ ପାରେ । ତେଣୁ ବନ୍ଧ୍ୟାକରଣ ଅସ୍ତ୍ରୋପଚାର କରାଉଥିବା ପ୍ରତ୍ୟେକ ଦମ୍ପତି ଅସ୍ତ୍ରୋପଚାର ପୂର୍ବରୁ ଏଥି ସହିତ ଜଡ଼ିତ ସୁବିଧା ଓ ଅସୁବିଧା ସଂପର୍କରେ ଭଲ ଭାବରେ ଜାଣିବା ଆବଶ୍ୟକ । ଯେଉଁ ଦମ୍ପତି ଆଉ ପିଲା ଚାହାନ୍ତି ନାହିଁ, ସେ ଦୁହିଁଙ୍କ ମଧ୍ୟରୁ କେହି ଜଣେ ବିଶେଷତଃ ସ୍ୱାମୀ ବନ୍ଧ୍ୟାକରଣ ଅସ୍ତ୍ରୋପଚାର କରାଇ ନେବା ଉଚିତ ।

